# ଭୂମିକା ।

ମୁଁ ଏହି

"ଗୋ-ମାହାତ୍ମ୍ୟ"

ପ୍ରବନ୍ଧକୁ ଇତିପୂର୍ବେ 'ଉତ୍କଳ-
ପ୍ରଭା'ରେ ପ୍ରକାଶ କରିଥିଲି । ବର୍ତ୍ତ-
ମାନ ଉକ୍ତ ପ୍ରବନ୍ଧଟି ପୁସ୍ତକାକାରରେ
ପ୍ରକାଶିତ ହେଲା । 'ଗୋ-ମାହାତ୍ମ୍ୟ' ପ୍ରକା-
ଶର ଯାବତୀୟ ବ୍ୟୟ କାନଣ୍ଡାର ଯୁବରାଜ ସହୃଦ-
ୟଶେଖର ଶ୍ରୀମାନ୍ ସଚ୍ଚିଦାନନ୍ଦ ଦେବ ମହୋଦୟ
ପ୍ରଦାନ କରିଥିବାରୁ ମୁଁ ଅତ୍ୟନ୍ତ କୃତଜ୍ଞ ହୋଇଅଛି,
ବର୍ତ୍ତମାନ ତାଙ୍କର କଲ୍ୟାଣ କାମନାରେ ଏପୁସ୍ତକ ଉତ୍କଳର
ସହୃଦୟ ମଣ୍ଡଳୀରେ ବିତରଣ କରାଯିବାର ସ୍ଥିରକରି
ଅଛି । 'ଗୋ-ମାହାତ୍ମ୍ୟ' ପାଠେ ଗୋଜାତିପ୍ରତି
ଯଦି ଜଣକର ବିଶୁଦ୍ଧ ଶ୍ରଦ୍ଧା ଭକ୍ତିର ସଞ୍ଚାର
ହୁଏ ତେବେ ଯୁବରାଜ ମହୋଦୟଙ୍କ
ବ୍ୟୟ ଏବଂ ମୋହର ପରିଶ୍ରମ
ସାର୍ଥକ ବିବେଚିତ ହେବ ।

ତା, ୩୦ । ୮ । ୨୪

ଶ୍ରୀ ନୀଳମଣିମିଶ୍ର ଶର୍ମ୍ମା ।

# ଗୋ—ମାହାତ୍ମ୍ୟ ।

ଗୋ--ଜାତି ଦ୍ୱାର୍ ମାନବ ସମାଜ ଯେ କେତେ ପର୍ମାଣରେ ଉପକୃତ , ଏକଥା ଆଉ କାହାରିକୁ ବୁଝାଇ ଦେବାକୁ ହେବ ନାହିଁ । ଯେଉଁ ଗୋ-ଜାତିର ଦଧି, ଦୁଗ୍ଧ, ଘୃତ ପ୍ରଭୃତି ଅତ୍ୟନ୍ତ ରୁଚିକର, ତୃପ୍ତି ପ୍ରଦ ଏବଂ ବଳକର ଓ ଅସ୍ଥି ବର୍ଦ୍ଧକ , ଯେଉଁ ଗୋ—ଜାତିର ମୂତ୍ର ପାନରେ ଅଭକ୍ଷ ଭକ୍ଷଣାଦି ଗୁରୁତର ପାପ ଧ୍ୱଂସ ହୁଏ ଏବଂ ଶରୀରର ନାନା ଉପକାର ସାଧିତ ହୁଅଇ, ଯେଉଁ ଗୋ—ଜାତିର ମଳ ଭୂମିର ଉର୍ବରାଶକ୍ତି ବୃଦ୍ଧି କରି ତାହାକୁ କୃଷିର ଉପଯୋଗୀ କରେ--ପୁଣି ଶୁଷ୍କ ହେଲେ କାଷ୍ଠ ବଦଳ ସ୍ଥାନରେ ଜାଳେଣି କାଷ୍ଠର କାର୍ଯ୍ୟ କରେ , ଯେଉଁ ଗୋ—ଜାତିର ସାହାଯ୍ୟରେ ଆମ୍ଭମାନଙ୍କର ନିତ୍ୟ ଖାଦ୍ୟ ସଂଗୃହୀତ ହେଉଅଛି , ଯେଉଁ ଗୋ ଜାତିର ଚର୍ମ୍ମ , ପାଦୁକା ପ୍ରସ୍ତୁତ ପ୍ରଭୃତି ବିବିଧ ଶିଳ୍ପ କାର୍ଯ୍ୟର ଉପଯୋଗୀ, ଯେଉଁ ଗୋ-ଜାତି ଦୁର୍ଗମ ଦେଶରେ ଯାଇ ବାଣିଜ୍ୟ କରିବା ବିଷୟରେ ଆମ୍ଭମାନଙ୍କର ପ୍ରଧାନ ଅବଲମ୍ବନ , ଯେଉଁ ଗୋ-ଜାତିର <u>ଏକମାତ୍ର</u> ଦୁଗ୍ଧ ଉପରେ .ଆମ୍ଭମାନଙ୍କର ଶୈଶବ ଜୀବନ ନିର୍ଭର କରେ , ସେହି ଗୋ--ଜାତିର ଉପକାରିତାକୁ ଏ ଦେଶରେ କାଗଜ କଲମର ସାହାଯ୍ୟ ନେଇ ବୁଝାଇ ଦେବାକୁ ହେବ ? ଗୋ—ଜାତି ଦ୍ୱାରା ଯଦ୍ୟପି ଅମ୍ଭମାନଙ୍କର ଅନ୍ୟ କିଛି ଉପକାର ସାଧିତ ହେଉ ନଥାନ୍ତା , ତେବେ ମଧ୍ୟ ଗୋ—ରସ ମନୁଷ୍ୟର ଶୈଶବ ଜୀବନ ରକ୍ଷାର ଏକମାତ୍ର ଅବଲମ୍ବନ ହେତୁ , ଗୋ—ଜାତି ଅମ୍ଭମାନଙ୍କର ଏକାନ୍ତ ପୂଜନୀୟ ଓ ଭକ୍ତିର ପାତ୍ର । କିନ୍ତୁ ବାସ୍ତବରେ

ଗୋ-ଜାତିର ଗୁଣ କେତିକ ନୁହେ-ସେମାନଙ୍କ ଦ୍ୱାରା ଅମ୍ଭମାନଙ୍କର ଐହିକ ପାରତ୍ରିକ ଅନନ୍ତ ଉପକାର ସାଧିତ ହେଉଅଛି। ଗୋ-ଜାତି ଦ୍ୱାରା ମାନବସମାଜ ଅଶେଷ ପ୍ରକାରରେ ଉପକୃତ ବୋଲି ଅମ୍ଭମାନଙ୍କର ପୂର୍ବ ପୁରୁଷମାନେ କହି ଯାଇଅଛନ୍ତି ଯେ-

" ନ ଗୋଷ୍ପୁ ତୁଲ୍ୟଂ ଧନମସ୍ତି କିଞ୍ଚିତ୍ " ।

ଏହି ଉକ୍ତି ଯେ ଏକାନ୍ତ ସାରବାନ୍, ଏଥିରେ ତିଳଶମାତ୍ର ସନ୍ଦେହ ନାହିଁ ! ବାସ୍ତବରେ ଜଗତ ମଧ୍ୟରେ ଅନେକ ପଶୁ, ପକ୍ଷୀ ଅଛନ୍ତି କିନ୍ତୁ କୌଣସି ପଶୁ ପକ୍ଷୀ ପ୍ରତି ଅମ୍ଭମାନଙ୍କର ଜୀବନ ବିଶେଷ ଭାବରେ ନିର୍ଭର କରିନାହିଁ। ହାତୀ, ଘୋଡା, ଉଷ୍ଟ୍ରାଦି ବିଳାସର ଉପଯୋଗୀ କିନ୍ତୁ ଜୀବନ ରକ୍ଷାର ଉପଯୋଗୀ ନୁହନ୍ତି। ହାତୀ, ଘୋଡା ନଥିଲେ ମାନବ ସମାଜର ବିଶେଷ କିଛି କ୍ଷତି ହେବ ନାହିଁ, କିନ୍ତୁ ଗୋ-ଜାତି ଅଭାବରେ ମାନବ ସମାଜ ଦଣ୍ଡେ ଚଳି ପାରିବ ନାହିଁ। ଅମ୍ଭେମାନେ ଗୋ-ଜାତି ଦ୍ୱାରା ଯେପରି ଉପକାର ପାଉଅଛୁଁ, ଅନ୍ୟ ପଶୁ ଦ୍ୱାରା ତାହାର ସହସ୍ରାଂଶରୁ ଏକାଂଶ ସୁଦ୍ଧା ପାଉଅଛୁଁ କି ନା ସନ୍ଦେହର ବିଷୟ। କେଉଁ ପଶୁ ଦ୍ୱାରା ଅମ୍ଭମାନଙ୍କର ଅନ୍ନ ସଂସ୍ଥାନ ହେଉଅଛି ? କେଉଁ ପଶୁର ଦଧି, ଦୁଗ୍ଧ, ଘୃତ, ଗୋ-ରସ ପର ଅମ୍ଭମାନଙ୍କର ଉପକାରରେ ଲାଗୁଅଛି ? କେଉଁ ପଶୁର ମଳ ମୂତ୍ର ପବିତ୍ରତା ସମ୍ପାଦକ ଜ୍ଞାନରେ ଉପଦିଷ୍ଟ କରା ହେଉଅଛି ? ଶାସ୍ତ୍ରରେ ଲିଖିତ ଅଛି ଯେ——

:ଗୋମୟଂ ଯମୁନା ସାକ୍ଷାତ୍ ଗୋମୂତ୍ରଂ ନର୍ମ୍ମଦା ଶୁଭା
ଗଙ୍ଗା କ୍ଷୀରନ୍ତୁ ଯାସାଂ ବୈ କିଂ ପବିତ୍ରମତଃପରଂ ।

କେଉଁ ପଶୁର ମଳ, ମୂତ୍ର ଓ ଦୁଗ୍ଧର ଏପରି ଅଗାଧ ପବିତ୍ରତା କୀର୍ତ୍ତିତ ହୋଇଅଛି ? କେଉଁ ପଶୁର ମଳ ଦ୍ୱାରା ଗୃହଶୁଦ୍ଧି କାର୍ଯ୍ୟ

ସାଧିତ ହୁଏ ? ଯେଉଁ ପଶୁର ମଳରେ ଗୃହ ଲେପନ କଲେ ତାହା ବଙ୍କମାନଙ୍କର ବାସ ଯୋଗ୍ୟ ହୋଇ ସେସ୍ଥାନରୁ ଅପରାଧ ଅନ୍ତର୍ହିତ ହୁଏଇ ? ଏସବୁର ଉତ୍ତର ସ୍ୱତଃ ହିଁ ଆମ୍ଭମାନଙ୍କୁ ପୁନଶ୍ଚ ଗୋ—ଜାତିର ନାମୋଚ୍ଚାରଣ କରିବାକୁ ଦେବ ? ଶାସ୍ତ୍ର ପ୍ରମାଣ ଯଥା —

ଯଦ୍‌ଗୋମୟେନ ପରିଲେପିତ ଭୂମିଭାଗେ
ତେନୈବଲେପିତ ଗୃହେଽପି ବସନ୍ତି ଦକ୍ଷାଃ ।
ତେଷାଂକୁଲେ ଭବତି ନାଽସୁରଭୂତ ବାଧା
ବ୍ୟାଧିଃ କୁମାରୁତ କୃତୋପି ନ ଭତ୍ରଯାତ ।

ଯେଉଁ ଗୋ—ଜାତି ଆମ୍ଭମାନଙ୍କର ଏତେ ଆବଶ୍ୟକ, ଯେଉଁ ଗୋ-ଜାତିର ଦଧି ଦୁଗ୍ଧ, ମଳ ମୂତ୍ର ଏତେ ଉପକାରୀ, ସେହି ଗୋ-ଧନ ପୁଣି ସତ୍ପାତ୍ରରେ ଦାନ କଲେ ଗୋଦାତାର ପିତୃ ପିତାମହ, ଋଷି ବୃନ୍ଦ ଓ ଦେବତାମାନେ ପ୍ରଫୁଲ୍ଲ ଚିତ୍ତରେ ପ୍ରସନ୍ନ ରହନ୍ତି, ପ୍ରମାଣ ଯଥା;—

ଦୀୟମାନାଂଚ ଗାଂ ଦୃଷ୍ଟ୍ୱା ନୃତ୍ୟନ୍ତି ପ୍ରପିତାମହାଃ
ପ୍ରୀଯନ୍ତେ ଋଷୟଃ ସର୍ବେ ଋଷାଯୋ ଦେବତୈଃ ସହ ।

କେବଳ କ ଏତିକ ମାତ୍ର ଫଳ ? ନା, ଗୋ-ପ୍ରଦାନକଲେ ଗୋ—ପ୍ରଦାତାର ପୂର୍ବବର୍ତ୍ତୀ ସାତ ପୁରୁଷ ଏବଂ ପରବର୍ତ୍ତୀ ସାତ ପୁରୁଷ ପାପମୁକ୍ତହୋଇ ସ୍ୱର୍ଗଲାଭର ଅଧିକାରୀ ହୁଅନ୍ତି । ଏସମ୍ବନ୍ଧେ ଆଦିତ୍ୟ ପୁରାଣରେ ଲିଖିତ ଅଛି ଯେ—

ଗୋ ପ୍ରଦାନା ତାରୟତେ
ସପ୍ତ ପୂର୍ବାନ୍ ପରାନ୍ ତଥା ।

ପୁଣି ସ୍ୱୟଂ ଗୋ—ପ୍ରଦାତା ପ୍ରଦତ୍ତ ଗୋ'ର ଲୋମପରିମିତ ବର୍ଷଯାଏ ସ୍ୱର୍ଗ ବାସ କରି ପୁନଶ୍ଚ ଗୋ—ଭକ୍ତ ହୋଇ ଜନ୍ମ

ଗ୍ରହଣ କରେ । ଅର୍ଥାତ୍ ଏକମାତ୍ର ଗୋ—ଦାନ କଲେ ଗୋ-ଦାତା ଜନ୍ମଜନ୍ମାନ୍ତର ଗୋ-ଭକ୍ତ ହୋଇ ସ୍ୱର୍ଗ ସୁଖ ଭୋଗ କରଇ ତାହା ଭାଗ୍ୟରେ ଆଉ ନରକ ଦର୍ଶନ ଘଟଇ ନାହିଁ । ଏ ସମ୍ବନ୍ଧେ ମହାଭାରତୀୟ ପ୍ରମାଣ ଏହି ଯେ—

ଯାବନ୍ତି ରୋମାଣି ଭବନ୍ତି ଧେନ୍ୱା —
—ସ୍ତାବନ୍ତି ବର୍ଷାଣି ମହୀପୃଷ୍ଠେ ଖେ ।
ସ୍ୱର୍ଗାଚ୍ୟୁତଶ୍ଚାପି ତତ ସ୍ତୀ ଲୋକେ
କୁଲେ ସମୁତ୍ପଦ୍ୟତ ଗୋମତାଂ ସଃ ।

ଅନ୍ୟ କୌଣସି ପଶୁକୁ ଦାନ କଲେ ଏପରି ଫଳ କଦାଚ ମିଳ ନପାରେ । ଅନେକେ ଅଜ୍ଞାନତା ବଶତଃ ଗୋ—ଜାତି ପ୍ରତି ସାମାନ୍ୟ ପଶୁଜ୍ଞାନ କରନ୍ତି କିନ୍ତୁ ପ୍ରକୃତରେ ଜ୍ଞାନୀମାନେ ଗୋ-ଜାତି ପ୍ରତି ଦେବତା ଜ୍ଞାନ ରଖନ୍ତି, କାରଣ ଭାଗବତରେ ଲଖିତ ଅଛି ଯେ

ବିପ୍ରା ଗାବ ଶ୍ଚ ବେଦା ଶ୍ଚ
ତ୍ରଇବଶ୍ଚ ହରେସ୍ତନୂଃ ।

( ଅର୍ଥାତ୍ ) ବ୍ରାହ୍ମଣ, ଗୋ, ଯଜ୍ଞ ଏ ସବୁ ହରିଙ୍କ ଶରୀରଅଂଶମନ୍ତି ।

ପ୍ରିୟ ପାଠକ ! ଏପରି ଶାସ୍ତ୍ର ବଚନର ବିଦ୍ୟମାନତାରେ ଏବଂ ଗୋ ଜାତିର ଅତ୍ୟନ୍ତ ଉପକାରିତା ଦର୍ଶନରେବି ସେହି ଗୋ-ଜାତି ପ୍ରତି ପଶୁଜ୍ଞାନ ରଖିବା ଉଚିତ ? ଗୋ—ଜାତି ଯେ ପଶୁ ନୁହେ—ପଶୁରୂପୀ ଦେବତା ସମଷ୍ଟି ତାହା ନିମ୍ନୋକ୍ତ ସ୍ତୁତି ବାକ୍ୟ-ରୁ ସୁସ୍ପଷ୍ଟ ପ୍ରତିପନ୍ନ ହେଉ ଅଛି ଯଥା —

ପୃଷ୍ଠେ ବ୍ରହ୍ମା ଗଲେ ବିଷ୍ଣୁର୍ମୁଖେ ରୁଦ୍ରଃ ପ୍ରତିଷ୍ଠିତଃ
ମଧ୍ୟେ ଦେବଗଣାଃ ସର୍ବେ ରୋମକୂପେ ମହର୍ଷୟଃ ।
ନାଗଃପୁଚ୍ଛେ ଖୁରାଗ୍ରେଷୁ ଯେଚାଷ୍ଟୌ କୁଲ ପର୍ବତାଃ
ମୂତ୍ରେ ଗଙ୍ଗାଦୟୋ ନଦ୍ୟୋ ନେତ୍ରୟୋଃ ଶଶିଭାସ୍କରୌ

ଏତେ ଯସ୍ୟାସ୍ତନୌ ଦେବାଃ ସା ଧେନୁ ବ୍ବରଦାସ୍ତୁମେ ।

ଏଥି ଉତ୍ତାରୁ ଯେବେ କେହି ଗୋ—ଜାତି ପ୍ରତି ପଶୁଜ୍ଞାନକରେ, ତାହାକୁ ମନୁଷ୍ୟ ନକହି ମନୁଷ୍ୟାକାର ପଶୁ କହିବାରେ ଆପତ୍ତି କି?

ଗଭୀର ଦୁଃଖର ବିଷୟ ଯେ ଅମ୍ଭମାନଙ୍କର ଅଶେଷ ଉପକାରୀ ଏବଂ ଅତିଅଧମ ଗୋ—ଜାତି ଅମ୍ଭମାନଙ୍କର ଅଯତ୍ନରୁ ଆଜି ନିତାନ୍ତ ଶୋଚନୀୟ ଦଶାକୁ ଲଭିଅଛି । ଲୋକମାନେ ଏକଥା ଜାଣିପାରୁ ନାହାନ୍ତି ଯେ ଚନ୍ଦ୍ର, ସୂର୍ଯ୍ୟ, ଜଳ, ବାୟୁପରି ଗୋ—ଜାତି ଅମ୍ଭମାନଙ୍କର ଏକାନ୍ତ ଅବଶ୍ୟକୀୟ ଜୀବ ଏବଂ କେବଳ ଏହି ଗୋ—ଜାତି ପ୍ରସାଦରୁ ନବାବର ନବାବୀ, ଗୃହୀର ଗୃହସ୍ତୀ, ଏବଂ ଏହି ଗୋ—ଜାତି ପ୍ରସାଦରୁ ଅମ୍ଭମାନଙ୍କର ଯାବତୀୟ ଲୀଳା ଖେଳା ସମ୍ପାଦିତ ହେଉଅଛି । ଏପରି କଲ୍ୟାଣପ୍ରଦ ଗୋ—ଜାତିର ସୁଖ ସୁବିଧାର ଚେଷ୍ଟାକରିବା କି ଅମ୍ଭମାନଙ୍କର ପ୍ରଧାନତମ କର୍ତ୍ତବ୍ୟ ନୁହଇ? ଆଜି କେତେଜଣ ଲୋକ ଏହି କର୍ତ୍ତବ୍ୟ ପାଳନ କରୁଅଛନ୍ତି? ଅମ୍ଭମାନଙ୍କର ଅବହେଳା ଓ ଅମନୋଯୋଗରୁ ଗୋ-ଜାତି ହାଡଭଙ୍ଗା ପରିଶ୍ରମ କରି ମଧ୍ୟ ଉପଯୁକ୍ତ ଖାଦ୍ୟ ନପାଇ ଦିନକୁ ଦିନ ହୀନବଳ ହେଉ ଅଛନ୍ତି । ଗୋ—ଜାତି ମାନେ ଆଜି କଙ୍କାଳ, ଅସ୍ଥି ଚର୍ମ୍ମସାର । ଗୋ—ଜାତିର କି ଖାଇବାର, କି ଶୋଇବାର, କି ପିଇବାର, କି ଚିକିତ୍ସିତ ହେବାର କୌଣସି ବିଷୟରେ ସୁବନ୍ଦୋବସ୍ତ ନାହିଁ । ଏସବୁ କରିବା କି କର୍ତ୍ତବ୍ୟ? ଗୋ—ଜାତିକୁ ଦେବତା ଜ୍ଞାନ ନକଲେ ଉପକାରୀ ଜୀବବୋଲି ତ ଅବଶ୍ୟ ସ୍ୱୀକାର କରିବାକୁ ହେବ? ତେବେ ଉପକାରୀ ଜୀବର ପ୍ରତ୍ୟୁପକାର ସାଧନ କରିବା କି ଉଚିତ? ଏଥିରେ ଅନ୍ୟଥା କଲେକି ଅମ୍ଭେମାନେ ଦୋଷଭାଗୀ ହେବାନାହିଁ? ଗୋ—ଜାତିକୁ ଉପକାରୀ ଜୀବବୋଲି ଯେବେ ସ୍ୱୀକାରକର ତେବେ ସେମାନଙ୍କର

ପରୁପକାର ସାଧନରେ ପ୍ରତ୍ୟେକ ବ୍ୟକ୍ତି ଅଗ୍ରସର ହୁଅ ଏବ "ପରୋପକାରଃ ସ୍ୱର୍ଗାୟ" ପୁଣି "ପରୋପକାର ଶତାଂ ବିଭୂତୟଃ" ବାକ୍ୟଦ୍ୱୟ ସତତ ସ୍ମରଣରଖ ।

ଆମ୍ଭେମାନେ ପବିତ୍ର ହିନ୍ଦୁଧର୍ମାବଲମ୍ବୀ ହିନ୍ଦୁସନ୍ତାନ ଏବଂ ଆମ୍ଭେମାନେ ସ୍ୱୟଂ ହିନ୍ଦୁ । ଅତଏବ ଆମ୍ଭମାନଙ୍କର ହିନ୍ଦୁଶାସ୍ତ୍ର ଅବମାନନା କରିବା କଦାପି ଉଚିତନୁହେ । ସେହି ହିନ୍ଦୁଶାସ୍ତ୍ର, ସମ୍ପନ୍ନରେ ଗୋରକ୍ଷା କରିବାସକାଶେ ଆମ୍ଭମାନଙ୍କୁ ଯେଉଁ ଉପଦେଶ ଦେଉଅଛି ତାହା ଅକ୍ଷରେ ସହିତ ପାଳନ କରିବା ସର୍ବତୋଭାବରେ କର୍ତ୍ତବ୍ୟ ଅଟେ । ଯେଉଁମାନେ ଶାସ୍ତ୍ରବଚନ ଅବହେଳନ କରି ଗୋ—ପାଳନ ବିଷୟରେ ବିମୁଖ ହୁଅନ୍ତି ସେମାନେ ଗୋ—ହତ୍ୟା ପାପର ଭାଗୀହୋଇ ନରକରେ ପତିତ ହୁଅନ୍ତି ; ଏସମ୍ବନ୍ଧେ ଶିବପୁରାଣରେ ଲିଖିତ ଅଛିଯେ—

ଯେ ଭାଗ୍ ହୀନ୍ତ ଗ୍ରେଗାର୍ତ୍ତାନ୍
ଗୋ ତୃଷାଂର୍ତ୍ତ କ୍ଷୁଧାତୁରାନ୍
ନପାଲୟନ୍ତି ଯତ୍ନେନ
ଗୋଘ୍ନାସ୍ତେ ନାରକାଃ ସ୍ମୃତାଃ ।

'ଏହାବିଧିବାର ଏକାଦଶୀ ନୁହେ ଯେ "କରଣେ ଫଳାଭାବ ଅକରଣେ ପ୍ରତ୍ୟବାୟ" ହେବ । ଗୋ—ରକ୍ଷା ନକଲେ ଯେପରି ପାପ ହୁଏ କଲେ ସେହିପରି ପୁଣ୍ୟ ଓ ବାଞ୍ଛିତଫଳଲାଭ ହୁଅଇ । ଅତଏବ ବ ବାଳକ ବାଳିକା, ବ ବୃଦ୍ଧ ବୃଦ୍ଧା, କ ରୋଗୀ, କ ଉପବାସୀ ସମସ୍ତଙ୍କର ଶକ୍ତି ଅନୁସାରେ ଗୋ-ସେବା କରିବା ଉଚିତ, ଅଙ୍ଗସୂତ୍ରରେ ଲିଖିତଅଛିଯେ "ବାଲବୃଦ୍ଧା ରୋଗାର୍ତ୍ତାଃ ଶାନ୍ତା ଉପାସିତ୍ତାଂ ଶକ୍ତିତଃ ପ୍ରତିକାରଂ କୁର୍ଯ୍ୟାତ୍ତୁ ଗବାଂ ଏଷଧର୍ମଃ ଅନ୍ୟଥା ବିପ୍ଲବଃ ।" ଗୋ—ଜାତିର ସେବାକଲେ ଯେ ବାଞ୍ଛିତ ଫଳଲାଭ,

ହୁଅଇ ଏହା ଆମ୍ଭମାନଙ୍କର ମନଗଢା କଥାନୁହଇ । ପିତାମହ ଭୀଷ୍ମ ଯୁଧିଷ୍ଠିରଙ୍କୁ କହୁଥିଲେଯେ —

ଗାଶ୍ଚ ଶୁଶ୍ରୂଷତେ ଯଶ୍ଚ ସମଂ ବେତିଚ ସର୍ବଶଃ
ତସ୍ମୈ ତୁଷ୍ଟାଃ ପ୍ରଯଚ୍ଛନ୍ତି ବରାନପି ସୁଦୁର୍ଲ୍ଲଭାନ୍ ।

ଏଥିଂ ଗୋ—ସେବା କର ସୂର୍ଯ୍ୟବଂଶାବତଂସ ମହାରାଜ ଦୀଲୀପ ଭୁବନ ବିଖ୍ୟାତ ପୁତ୍ର — ରତ୍ନ ଲାଭକରିଥିବା କଥା କିଏନାଜାଣେ ? ଶିବପୁରାଣରେ ଲେଖିଅଛିଯେ ଯେଉଁ ବ୍ୟକ୍ତି ଶ୍ରଦ୍ଧାପୂର୍ବକ ଗୋ-ସେବାକରେ ସେ ଅଗ୍ନିଲୋକକୁ ଯାଇ ଉତ୍ତମ ସ୍ଥାନଲାଭ କରେ ।

ଗୋରୁମାନଙ୍କୁ ଯେହୁ ସଶ୍ରଦ୍ଧଚିତ୍ତରେ ଖାଦ୍ୟପ୍ରଦାନ କଲେ ସେ ବ୍ୟକ୍ତି ସ୍ୱର୍ଗଲାଭର ଅଧିକାରୀ ହୁଅଇ । ପ୍ରମାଣ ଯଥା —

ଗବାଂ ଗ୍ରାସ ପ୍ରଦାନେନ ସ୍ୱର୍ଗଲୋକେ ମହୀୟତେ ।

ଭବିଷ୍ୟ ପୁରାଣରେ ଲିଖିତ ଅଛିଯେ —

ତୃଣୋଦକେନ ସଂଯୁକ୍ତଂ ଯଃ ପ୍ରଦଦ୍ୟାଦ୍‌ଗବାହ୍ନିକଂ
କପିଳାଶତଦାନସ୍ୟ ଫଳଂ ବଦେ ନ ସଂଶୟଃ ।

ପୁଣି ଯେଉଁମାନେ ପରର ଗୋରୁକୁ ଶ୍ରଦ୍ଧାସହ ଗ୍ରାସ ଅଧିକ ରେ କିଛି ଖାଦ୍ୟପ୍ରଦାନ କରନ୍ତି ସେହିକେ ସ୍ୱର୍ଗଲାଭର ଅଧିକାରୀ ହେବା ସମ୍ବନ୍ଧେ ମହାଭାରତରେ ଲିଖିତ ଅଛିଯେ —

ଘାସମୁଷ୍ଟିଂ ପରଗବେ ଦାନ୍ତିଂ ଦଦ୍ୟାତ୍ତୁଯଃ ସଦା
ଅକୃତ୍ୱା ସ୍ୱୟମାହାରଂ ସ୍ୱର୍ଗଲୋକଂ ସଗଚ୍ଛତି ।

ଯେଉଁମାନେ ପରରଗୋରୁକୁ ଖାଦ୍ୟପ୍ରଦାନ କରନ୍ତି, ଅଥ-ବା ସିଂହ ବ୍ୟାଘ୍ର ଭୟରେ ଭୀତ କମ୍ପା ପଙ୍କଲଗ୍ନ ଗୋରୁକୁ ରକ୍ଷା ବା ଉଦ୍ଧାର କରନ୍ତି ସେମାନେ ଅନନ୍ତ ପୁଣ୍ୟର ଅଧିକାରୀ ହୁଅନ୍ତି, ଏସମ୍ବନ୍ଧେ ପ୍ରମାଣ ଯଥା —

ଦତ୍ତ୍ୱା ପରଗବେ ଗ୍ରାସଂ ପୁଣ୍ୟଂ ସମହଦଶ୍ନୁତେ

ଛିନ୍ନବ୍ୟାଘ୍ର ଭୟାତ୍ ତ୍ରସ୍ତାଂ ପଙ୍କଲଗ୍ନା ଜଲେଗତାଂ ।

ବ୍ରହ୍ମପୁରାଣରେ ଲେଖିଅଛି ଯେ —

ଅନାଥାନାଂ ଗବାଂ ଯତ୍ନାତ୍ କାର୍ଯ୍ୟନ୍ତୁ ଶିଶିରେ ମଠଃ
ପୁଣ୍ୟାର୍ଥିଂ ଯବସାପୂର୍ଣ୍ଣେ ତୃଣତୋୟେର୍ବା ଜିତ
ଏବଂକୃତେ ମହୀଂ ପୂର୍ଣ୍ଣାଂ ଦତ୍ତ୍ୱା ଦ୍ୱିଜେ ଫଳଂ ଲଭେତ୍
ଗୋ-ପ୍ରଦାନେନ ଯତ୍ପୁଣ୍ୟ ଗବାଂ ସଂରକ୍ଷଣାଲ୍ଲଭେତ୍

ଅନାଥ ଗୋରୁମାନଙ୍କୁ ଶୀତରୁ ରକ୍ଷାକରିବା ନିମନ୍ତେ ଯେଉଁମାନେ ଗୃହ ପ୍ରସ୍ତୁତ କରିଦିଅନ୍ତି, ଯେଉଁମାନେ ଘାସପାଣି ପ୍ରଭୃତି ଖାଦ୍ୟପ୍ରଦାନ କରନ୍ତି, ଯେଉଁମାନେ କାଷ୍ଠ ସାହାଯ୍ୟ କରନ୍ତି ସେମାନେ ପ୍ରତ୍ୟେକେ ଜନ୍ମପୂର୍ଣ୍ଣ ପୃଥ୍ୱୀଦାନର ଫଳଲାଭ କରନ୍ତି, ଏବଂ ଗୋ— ସେବା ବଶତଃ ଗୋଦାନର ପୁଣ୍ୟମଧ୍ୟ ଲାଭକରନ୍ତି । ମହାଭାରତରେ ଲେଖିଅଛି ଯେ —

କୃତ୍ୱାଗବାର୍ଥେ ଶରଣଂ ଶୀତବାତ ସହଂ ମହତ୍
ଆସପ୍ତମଂ ତାରୟତି କୁଳଂ ଭରତ ସତ୍ତମ ।

"ହେ ଭରତ ! ଶୀତବାତରୁ ଗୋ— ରକ୍ଷାକରିବା ନିମନ୍ତେ ଯେଉଁମାନେ ଗୋଶାଳା ପ୍ରସ୍ତୁତକରି ଦିଅନ୍ତି ସେମାନେ ଆପଣାର ସପ୍ତପୁରୁଷଙ୍କୁ ଉଦ୍ଧାର କରନ୍ତି ।"

ଯେଉଁ ଗୋ— ଜାତିର ସ୍ଥିତିହେତୁ ଆମ୍ଭେମାନେ ବହୁଧ ଉପକାର ପାଉଅଛୁଁ । ଯେଉଁ ଗୋକୁ ପାଳନକଲେ ଏବଂ ଯେଉଁ ଗୋ'ର ସେବା କଲେ ଏତେପୁଣ୍ୟ, ସେହି ଗୋରୁଜାତି ଆଜି ପେଟକୁ ଦାନାପାଇବାକୁ ନାହିଁ, ସେହିଗୋଜାତିର ଦୁଃଖ କେହି ଆଖିଫେରାଇ ଦେଖିବାକୁ ନାହିଁ !! ଲୋକମାନଙ୍କର ଅତିଲୋଭ ଏବଂ ଅବିଚାରରୁ ଗୋଚର, ଗୋ-ଚାରଣ ଆଜି ଶସ୍ୟକ୍ଷେତ୍ରରେ ପରିଣତ, ଯାହାଯୋଗେ ଶସ୍ୟଲାଭ ଯାହାଯୋଗେ ଜୀବନଧାରଣ, ତାହାର ଅପକାର ସାଧନ ଆଜି ଆମ୍ଭମାନ

ଙ୍କର ଜୀବନରକ୍ଷା ଏକଥା ସ୍ମରଣ କଲେ କେଉଁ ହୃଦୟବାନ୍ ବ୍ୟକ୍ତି ଏଥିରୁ ସମ୍ପୂର୍ଣ୍ଣ ନୀରବରେ ରହି ପାରିବ ? ଏହି କାରଣରୁ ଯେ ଆମ୍ଭେମାନେ ଲକ୍ଷ୍ମୀଛଡ଼ା ହୋଇ ଦିନକୁ ଦିନ ଦୁର୍ଦ୍ଦଶା-ଗ୍ରସ୍ତ ହେଉଅଛୁଁ ଏହାକି କେହି ଭାବି ଦେଖୁ ଅଛନ୍ତି ? ବ୍ରହ୍ମବୈବର୍ତ୍ତ ପୁରାଣରେ ସ୍ପଷ୍ଟାକ୍ଷରରେ ଲେଖିଅଛି ଯେ—

ଗୋ ମାର୍ଗି ଦହନଂ କୃତ୍ୱା ଶସ୍ୟମେବ କରୋତି ଯଃ
ତଡାଗେବା ତଦୂର୍ଦ୍ଧେ ବା ସ ଗୋହତ୍ୟାଂ ଲଭେଦ୍ଧ୍ରୁବଂ ।
ତତ୍ପୁଷ୍ପୌଷ ପ୍ରଭୃତି ଭୂମିହ୍ରାନ ଶୀପ୍ରାହର୍ଷଃ
ପୂର୍ବହ୍ନେ ଦରଦ୍ରଷ୍ଟ ସୋଽପି ଯାସ୍ୟତି ରୌରବଂ ।

ଏପରି ଅମଙ୍ଗଳ ବର୍ଦ୍ଧାୟକ କାର୍ଯ୍ୟରେ ଆମ୍ଭମାନଙ୍କର ଆଉ ଅଗ୍ର-ସର ହେବା ଉଚିତ ନୁହଇ । ଗ୍ରାମେ ୨ ବସ୍ତିକ ଗୋ—ଚରଣ ଭୂମି ରହିବା ବିଷୟରେ ଯେପରି ଉଚିତ ବିଧାନ ହୁଏ , ତାହା କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଶିବ କହିଅଛନ୍ତି " ଯେଉଁ-ମାନେ ଗୋ , ବ୍ରାହ୍ମଣ , କନ୍ୟା , ସ୍ୱାମୀ , ମିତ୍ର , ତପସ୍ୱୀମାନଙ୍କ କାର୍ଯ୍ୟରେ ହେଳା କରନ୍ତି ବା ବାଧା ଦିଅନ୍ତି ସେମାନେ ନରକରେ ପତିତ ହୁଅନ୍ତି । " । ତଦ୍ ଯଥା ;—

ଯେ ଗୋ ବ୍ରାହ୍ମଣ କନ୍ୟାନାଂ ସ୍ୱାମିମିତ୍ର ତପସ୍ୱିନାଂ
ବନାଶୟନ୍ତି କାର୍ଯ୍ୟାଣି ତେନରାଃ ନାରକାଃ ସ୍ମୃତାଃ ।

ଅତଏବ ଗୋ—ରକ୍ଷା ସମ୍ବନ୍ଧୀୟ ମଙ୍ଗଳକର ପ୍ରସ୍ତାବରେ ବାଧା ବିଘ୍ନ ଉପସ୍ଥିତକରଣ ପ୍ରତ୍ୟେକ ବ୍ୟକ୍ତିର ଅସମ୍ଭବ ହେବା ଉଚିତ ।

ଶରୀରଂ ବା ପାତୟେତ୍
କାର୍ଯ୍ୟଂ ବା ସାଧୟେତ୍ ।

ଏହି ମହାମୂଲ୍ୟବାନ୍ ଉକ୍ତି ସମସ୍ତଙ୍କର ମୂଳମନ୍ତ୍ର ହେବା ଉଚିତ କୌଣସି କାର୍ଯ୍ୟକରିବାକୁ ବେଳେ ଏହା ଆମ୍ଭେ ସ୍ମରିବା ଆବଶ୍ୟକ ।

ଗୋ—ରକ୍ଷା ସମ୍ବନ୍ଧେ ଜଳସ୍ରୋତକ ତୁଲ୍ୟ କ୍ଷଣସ୍ଥାୟୀ ଏ ଶରୀରର ଧ୍ୱଂସ ହେଲେ ମଧ୍ୟ କ୍ଷତି ନାହିଁ । ଏହା ବଦଳରେ ଆମ୍ଭେମାନେ ହବ୍ୟଭଜନ ଲାଭକରି ଗୋ—ପ୍ରସାଦରେ ସ୍ୱର୍ଗସୁଖ ଲାଭ କରିବାକୁ ସକ୍ଷମ ହେବୁ । ଯେଉଁ ପାପ ସ୍ୱର୍ଗସୁଖ ପ୍ରାପ୍ତିର ପ୍ରତିବନ୍ଧକ, ସେହି ପାପରାଶି ଧ୍ୱଂସ ହେଲେ ସ୍ୱର୍ଗପ୍ରାପ୍ତିରେ ଆଉ ବାଧା ରହିବ ନାହିଁ । ଗୋ—ରକ୍ଷା କାର୍ଯ୍ୟରେ ଯେଉଁମାନେ ଜୀବନ ତ୍ୟାଗ କରନ୍ତି, ସେମାନେ ବ୍ରହ୍ମହତ୍ୟାଦି ଗୁରୁତର ପାପରେ ଲିପ୍ତ ଥିଲେ ମଧ୍ୟ ପାପ ମୁକ୍ତ ହୁଅନ୍ତି । ଏ ସମ୍ବନ୍ଧେ ମହର୍ଷି ମନୁ କହି ଅଛନ୍ତି—

ବ୍ରାହ୍ମଣାର୍ଥେ ଗବାର୍ଥେ ବା ସଦ୍ୟଃ ପ୍ରାଣାନ୍ ପରିତ୍ୟଜେତ୍
ମୁଚ୍ୟତେ ବ୍ରହ୍ମହତ୍ୟାୟାଃ ଗୋପ୍ତା ଗୋ ବ୍ରାହ୍ମଣସ୍ୟ ଚ ।

ଆଜି ଲୋକମାନେ ଗୋ-ରକ୍ଷା ସକାଶେ ପ୍ରାଣ ତ୍ୟାଗ କରିବା ତ ଦୂରର କଥା, କେହି ସେ ସକାଶେ ସାମାନ୍ୟ ପରିମାଣରେ ଯତ୍ନ ମଧ୍ୟ କରିବାକୁ ନାହିଁ, ପଦେ କଥା ମଧ୍ୟ କହିବାକୁ ନାହିଁ । ଆମ୍ଭମାନଙ୍କର ଏହି କର୍ତ୍ତବ୍ୟହୀନତା ହେତୁ ପବିତ୍ରତମ ଭାରତଭୂମି ଗୋ-ରକ୍ତରେ କ୍ରମଶଃ ଗାଢ଼ ଲୋହିତ ହେଉଅଛି । ଦୁଇଟି ଗୋଟିଏ ନୁହେଁ—ପ୍ରତିବର୍ଷ ଏ ଭାରତରେ ନ୍ୟୂନାଧିକ ୫୦ ସହସ୍ର ଗୋ,—ବଧ ହେଉ ଅଛନ୍ତି । ଲୋକମାନେ ଧନ ଲୋଭରେ ଗୋ-ଖାଦକମାନଙ୍କ ହସ୍ତରେ ଗୋ ବିକ୍ରୟକରି ବଧପାପରେ ଭାଗୀ ହେଉଅଛନ୍ତି । ଗବାଧିକାରୀ ଗୋ-ଖାଦକ ହସ୍ତରେ ଗୋ-ସମର୍ପଣ କଲେ ସେ ବଧପାପରେ ଲିପ୍ତହେଉଥିବା କଥା ପରାଶର-ସଂହିତାରେ ଲିଖିତ ଅଛି । ଯଥା—

ଗବାଶନେଷୁ ବିକ୍ରୀଣ ସ୍ତତଃ ପ୍ରାପ୍ନୋତି ଗୋବଧଂ ।

ପୁନଶ୍ଚ (ବିଷ୍ଣୁଧର୍ମୋତ୍ତରରେ) ବଶିଷ୍ଠ, ଏ ସମ୍ବନ୍ଧେ ଭଗବାନ୍ ରାମଚନ୍ଦ୍ରଙ୍କୁ କହିଅଛନ୍ତି,—

ବନସ୍ପତି ଗବାଂ ଗୃମ ! ନରକଂ ପ୍ରତିପଦ୍ୟତେ ।

ଏପରସ୍ଥଳେ ଅସ୍ମମାନଙ୍କର କି ଗୋ-ଖାଦକ ହସ୍ତରେ ଗୋ-ବିକ୍ରୟ କରିବା ଉଚିତ ? ଏପରି ଗୋ-ବିକ୍ରେତା ମାନଙ୍କୁ ସମାଜରେ ଗ୍ରହଣ କରିବା ଦ୍ୱାରା କି ସମାଜର ପବିତ୍ରତା ନଷ୍ଟ ହେଉ ନାହିଁ ? ଅତଏବ ଯେଉଁ ବ୍ୟକ୍ତି ଗୋ-ଖାଦକ ହସ୍ତରେ ଗୋ-ବିକ୍ରୟ କରିବ ତାଙ୍କୁ ସମାଜ ଚ୍ୟୁତ କରିବା ସକାଶେ ପ୍ରତ୍ୟେକ ବ୍ୟକ୍ତିର ଦୃଢ଼ପ୍ରତିଜ୍ଞ ହେବା ଉଚିତ । ନାଗପୁରର କୋଷ୍ଟାମାନେ, ରାଜନାନଗାଁ ପ୍ରଭୃତି ସ୍ଥାନର ନାପିତମାନେ ଏହିପରି ଦୃଢ଼ପ୍ରତିଜ୍ଞ ହୋଇ ଅଛନ୍ତି, ଅସ୍ମମାନଙ୍କର ଏଥିର ଅନୁକରଣ କରିବା ଉଚିତ ।

ମଧ୍ୟପ୍ରଦେଶ, ବୋମ୍ବାଇ, ଉତ୍ତରପଶ୍ଚିମ ପ୍ରଦେଶର କେତେକ ହୃଦୟବାନ୍ ପରିଣାମଦର୍ଶୀ ଲୋକ ସ୍ଥାନେ ସ୍ଥାନେ ମିଳିତହୋଇ ଗୋ ଦୁର୍ଦ୍ଦଶା ଦୂରୀକରଣ କାର୍ଯ୍ୟରେ ଅଗ୍ରସର ହୋଇଅଛନ୍ତି, ସ୍ଥାନେ ସ୍ଥାନେ ଗୋ-ରକ୍ଷିଣୀସଭା ସ୍ଥାପିତ ହୋଇଅଛି ହେଉଅଛି, ସଭାର ଅଧୀନରେ ଗୋ ଶାଳା ପ୍ରତିଷ୍ଠିତ ହୋଇ ରୁଗ୍ଣ, ଅକର୍ମଣ୍ୟ ଗୋ ପାଳିତ ହେଉଅଛନ୍ତି କେତେକ ଗୋ-ରକ୍ଷିଣୀ ସମିତିରୁ ଗୋ-ରକ୍ଷା ସମ୍ବନ୍ଧୀୟ ସମ୍ବାଦ ଓ ଉପଦେଶପୂର୍ଣ୍ଣ ପୁସ୍ତକ, ପତ୍ରିକା ପ୍ରକାଶିତ ହେଉଅଛି ମାତ୍ର ଏ ଉତ୍କଳଦେଶରେ ଗୋ-ରକ୍ଷା ସମ୍ବନ୍ଧେ କୌଣସି ବିଶେଷ ଚେଷ୍ଟା ହେବାର ଦେଖିବାକୁ ପାଉନାହୁଁ — ଯେପରିକି ଏ ଦେଶର ଗୋରୁମାନେ ପରମ ସୁଖରେ କାଳହରଣ କରୁଅଛନ୍ତି,- ଲୋକମାନଙ୍କ ଉଦାସିନତା ଦୃଷ୍ଟେ ସ୍ୱଭାବତଃ ମନରେ ଏହିଭାବ ଉଦିତହୁଏ ସତ୍ୟ କିନ୍ତୁ ପ୍ରକୃତରେ ଏ ଦେଶୀ ଗୋରୁ ମାନଙ୍କର ଲେଶମାତ୍ର ସୁଖ ନାହିଁ ଏକଥା ଦୃଢ଼ରୂପେ କୋଲଯାଇ ପାରେ । ଉତ୍କଳୀୟ ଭ୍ରାତାମାନଙ୍କର ଅତ ଏବିଷୟରେ ଉଦାସୀନ ରହିବା ଉଚିତ ହୁଉଛି ! ଉତ୍କଳର ସ୍ଥାନେ ସ୍ଥାନେ

ଗୋ-ରକ୍ଷିଣୀ ସଭା ସ୍ଥାପିତହୋଇ ଗୋ-ରକ୍ଷା କଲେ ସାଧ୍ୟମତ ଯତ୍ନ କରାଯାଉ, ସ୍ଥାନେ୨ ଗୋ-ଶାଳା ପ୍ରତିଷ୍ଠିତ ହୋଇ ରୁଗ୍ଣ, ଅକର୍ମଣ୍ୟ ପଶୁମାନେ ଚିକିତ୍ସିତ ଓ ପ୍ରତିପାଳିତ ହେବାର ବିଧାନ ହେଉ, ତାହାହେଲେ କ୍ରମରେ ଗୋ ବୃଦ୍ଧି ଦୃଶ୍ୟଭୂତ ହୋଇ ଗୋ ଜାତିର ବାଞ୍ଛିତ ଉନ୍ନତି ହୋଇ ପାରିବ । ' ଗୋ ବିଳାପ ' ପ୍ରଣେତା ଯଥାର୍ଥ କହିଅଛନ୍ତି ଯେ—

ବେଳ ଥାଉ ସାବଧାନ ହୁଅ ସଜ୍ଜନର
ଗୋ ହିତ କମନେ ଯଥାସାଧ୍ୟ ଯତ୍ନ କର ।
ସେବାରେ ସନ୍ତୁଷ୍ଟ ତାଙ୍କୁ ଯେବେ କରିପାର
ଉଦ୍ଧବ ଘରତାବାଣେ ପୁଣ୍ୟ ଦିବାକର ।
ତରତର ହୋଇ ତମ ଦେଶୁ ପଳାଇବ
ସମସ୍ତଙ୍କ ମୁଖପଦ୍ମ ସରସ ଦିଶିବ ।

* * * * *

ଯେବେ ଧମନୀରେ ଥିବ ଆର୍ଯ୍ୟର ଶୋଣିତ
ହୃଦୟେ କରୁଣା ଯେବେ ଥିବଟି କିଞ୍ଚିତ ।
ଇଚ୍ଛା ଯେବେ ହିନ୍ଦୁନାମେ ହେବାକୁ ଡାକିତ
ହିନ୍ଦୁଶାସ୍ତ୍ରେ ଆସ୍ଥା ଯେବେ ଅଛଟି ସଞ୍ଚିତ ।
ଉପକାରୀ ଉପକାର ଯେବେ ଅଟେ ସତ
ଭୀ.ନ. ଦୃଶ୍ୟ ହିର ଯେବେ ଜାଣ ଅର୍ଯ୍ୟମତ ।
ପୈତୃକ ସ୍ୱତ୍ୱ ରକ୍ଷଣେ ଯଦି ଅଛ ଚିନ୍ତ
ପରଦୁଃଖେ ଚିତ୍ତ ଯେବେ ହୁଏଇ ବ୍ୟଥିତ ।
ତେବେ ଗୋ ଦୁଃଖ ହରଣେ ସର୍ବେ ସାଧ୍ୟମତ
ଯତ୍ନ ଶ୍ରମ ଦାନକର ନୁହ ସଙ୍କୁଚିତ ।

---

ସମାପ୍ତ ।